# ଉପହାର ।

ସମ୍ମାନାସ୍ପଦ, ନୃପତିପ୍ରବର ଶ୍ରୀ ଶ୍ରୀ ଶ୍ରୀ ମଦନମୋହନ ସିଂହଦେବ

ମହୋଦୟଙ୍କ ଶ୍ରୀ କରକମଳେଷୁ ।

ସବିନୟ ନିବେଦନ ।

ଶ୍ରୀମନ୍ନରପତେ ,

ଶ୍ରୀଯୁକ୍ତ ପ୍ରାକୃତିକ ଉତ୍କଳର ଅନ୍ୟତମ ଉଦୀୟମାନ ନରପତି । ଶ୍ରୀଯୁକ୍ତଙ୍କ ସାକ୍ଷାତକାର ଲାଭ କରି ମୁଁ ବିଶେଷ ଆନନ୍ଦ ଲାଭ-କରିଅଛି । ସେହି ବିମଳ ଆନନ୍ଦ ଚିରସ୍ମରଣୀୟ କରିବା ସକାଶେ ମୁଁ ମୋହୋର ଅଗ୍ରଜ ମହୋଦୟଙ୍କ ଲିଖିତ "ଝଗଡ଼କୋଠ-ଦର୍ଶନ" ନାମକ ଏହି କ୍ଷୁଦ୍ର ପୁସ୍ତକ ଖଣ୍ଡି ଶ୍ରୀଯୁକ୍ତଙ୍କ ସୁଚରଣ କରିକମଳ-ରେ ଭକ୍ତ୍ୟୁପହାର ଅର୍ପଣ କଲି । ଗ୍ରହଣାନୁମତି ହେଉ , ଏତିକି ମାତ୍ର ପ୍ରାର୍ଥନା ।

ଝଗଡ଼କୋଠ
୧ । ୧ । ୧୯୦୪

ଶ୍ରୀଯୁକ୍ତଙ୍କର
ଚିରାନୁଗୃହୀତ
ଶ୍ରୀସୋମନାଥ ମହାନ୍ତି ।

# ଧରାକୋଟ-ଦର୍ଶନ ।

—:(*):—

( ରାମକେରୀ )



କନ୍ଦପୁଞ୍ଜ-କୁଞ୍ଜ ଗଞ୍ଜାମ—
ମଧ୍ୟେ ସାହିତ୍ୟ ଖଣି ,
ମେଳିଅଛି ମଞ୍ଜୁ ମାଧୁରୀ
ଧରାକୋଟ ଧରଣୀ ।
ଶାର୍ଦ୍ଦୂଳ ସଙ୍କୁଳ ସୁବଳ—
ଶୈଳ ( ୧ ) ପ୍ରାଚୀର ଯଥା—
ଦକ୍ଷିଣ ଦିଗରେ ଶୋଭୁଛି
ଶ୍ୟାମ ଉନ୍ନତ ମଥା ।
ମାନଦଣ୍ଡ କି ସେ ମହୀର
ଅବା ରତନ କୁଡ଼ ,
କିବା ଧର୍‌କୋଟ ଧରାର
ମରକତ ମକୁଟ ।

---

( ୧ ) ସୁବଳକୁ ଶବଳ । ସ୍ଥାନୀୟ ନାମ ସୁବଳା ପାହାଡ଼ ।

ଟ୍ରର ଟ୍ରର ଗିରିବେ ଭା' ଦେହି
ଟ୍ରରେ ଖର୍ଜ୍ଜୁର ଟ୍ରର ( ୧ )
ବ୍ୟୋମକେଶ ଶିରୁ ବହୁଛି
ଯଥା ଗଙ୍ଗା ପ୍ରଖର !
ଚଉବୁଲେ ଶ୍ୟାମ ବାରିଦ
ଶୈଳ ନୀଳାପଘନେ ,
ପିଙ୍ଗା ତୁଳା ଉଡ଼ ଯାଉଛି
ଯଥା ଖର ପବନେ ।
ତରୁ ଲତା ଗୁଳ୍ମେ ଆବୃତ
ଗିରି ତୋ ଅପଘନ ,
ଯେପରନ୍ତି ମାନବ ମାନସେ
ଯଥା ଇନ୍ଦ୍ରିୟ ଗଣ ।
ଧର୍ମ୍ମ ପଥେ ବଦ୍ଧ ପରାନ୍ତେ ,
ବାହୁତୀର୍ଥ ଉପଳ ,
ଦୁର୍ଗନ୍ଧ କର ରଖିଛି
ସଦା ତୋ ଅଙ୍କ ସ୍ଥଳ ।
ବହୁକାଳୁ ଯୋଗଧ୍ୟାନରେ
ବସି ଅଛୁରେ ଗିରି ,
କେଶଶୂନ୍ୟ ଯେଣୁ ବହିଛୁ
ବୃଦ୍ଧ ଗିରୀଶ ଶିରୀ ।

---

( ୧ ) ପ୍ରଚଳିତ ନାମ [illegible] ଖୋଲ ।

'ବନ୍ଧୁଦୂର୍' କେନ୍ଦ ଅବକର୍ଣ୍ଣେ
ତୋର ଉନ୍ନତ ଶିର ,
ଝଗଡ଼କୋଃ - ଝଗଡ଼ଶ୍ରୀର
ଭୂଇଁ ଭୁଙ୍ଗ ମନ୍ଦିର ।
ମଶାଣୀଲା ପ୍ରାନ୍ତେ ଶଙ୍କର
ଦୁର୍ଗାଦେଈ ଅଚଳ ,
ଦୁର୍ଗାଦେବୀଙ୍କର ଯେ ଅଟେ
ପ୍ରିୟ ଆବାସ ସ୍ଥଳ ।
ସ୍ତରେ ସ୍ତରେ ଗଢ଼ା ତୋ ତନୁ
ଶିଳାବ୍ଲକ ଶିଖ୍ର ,
ଶିଖରସ୍ଥ ଚକ୍ରୁ ଅହା କି
ଚିରୁଚାଦ ଛଗଳ ।
ବନ୍ଧୁଦୂର ବ୍ୟାପି ଶୋଭନ୍ତେ
ଘନ-ବନ ମଧ୍ୟରେ ,
ଚମିକିଲ ଭାସି ଉଠିଛ
ହମ୍ୟ କାଳସାଗରେ ।
ଲମ୍ବମାନ ଗୋଡ ପଶ୍ଚିମେ
କ୍ଷୁଦ୍ର ଗୁଡ଼ିଆ ନାସୀ ( ୧ ) ,

( ୧ ) ସ୍ୱନାମ ପ୍ରସିଦ୍ଧ ପର୍ବତ ।

କମଣ୍ଡଳୁ ଖଚେ ତୋ ଅଙ୍ଗେ
ଦିଶି ଯାଉଛୁ ଅସି ।
ମହାଦାଣ୍ଡ ବନା କାହିଁକି
ଭବେ କ୍ଷୁଦ୍ର ଗଛ ,
ଯେଣୁ ଥାଏଁ ନଦୀ ଭେଟିବ—
ବୋଲି ଘରଉ ପଛ ।
ପୂଜାଦସୁ ଲମ୍ବି ଅସିଣ
ଗିରି ମୁଣ୍ଡମଣ୍ଡଳ ,
ମୁଣ୍ଡ ଟେକି ଭୋଟେ ତାଙ୍କେ କି
କରିବାକୁ ଲଢାଇ ।
କି ବର୍ଣ୍ଣିବି ଗିରି ତୋ ରୂପ
ଅହା କି ଶୋଭାବନ ,
ମନୋହର ରୁଦ୍ର ଯେସନ
ଭୟଙ୍କର ତେସନ ।
ଭୀଷଣ ଭଲ୍ଲୁକ ବରାହ
ମହାବଳ ଶାର୍ଦ୍ଦୂଳ ,
ଏ ଆଦି ଶ୍ୱାପଦ ସମୂହେ
ତୁହି ସଦା ସଙ୍କୁଳ ।
ଏମାନେ ତୋହର ଦୁର୍ଜନ
ପ୍ରଜା ରେ ଗିରିରାଜ ,

ଶାନ୍ତମନ୍ତ୍ର ସଙ୍ଗେ ଧ୍ୟାନ
ତୋର ଅଶାନ୍ତ କାର୍ଯ୍ୟ ।
ତଥାପରୁ ଭାଙ୍କୁ ନଦଣ୍ଡି
ସଦା ଅଚରୁ କ୍ଷମା ,
କ୍ଷମାଗୁଣେ ତୋତେ ନରପତି
ଭବେ ନାଏ ଉପମା ।
ମହତ ଲୋକର ଅଟଇ
ସିନା କ୍ଷମା ଭୂଷଣ ,
କ୍ଷୁଦ୍ରମନା କ୍ଷୁଦ୍ର ଦୋଷରେ
ହଏ ଘୋର କଷଣ ।
ଶୁଭ୍ରଂର ନୀରେ ତୋ ଦେହ
ବିଖଣ୍ଡିତ ପଙ୍କଥା ,
ଶରତେ ସୁନୀଳ ଆକାଶ
ଶ୍ରୁପ୍ତା ପଥରେ ଯଥା ।
ଜଗନ୍ନାଥ ପୁରୀ ନିକଟେ
ଘନ ଶାଳ ବୋଷଇ ,
ଲୌହ ବାଡ଼ ପ୍ରାନ୍ତେ ବାରୁଣୀ—
ହରେ ଉହ୍ଟୁ ଞ୍ଚଇ ।
ଜଗନ୍ନାଥ ସିଂହ ନାମରେ
ଜଣେ ଭକ୍ତ ଭୂପତି ,

## ଝଗଡ଼କୋଠ ଦର୍ଶନ ।

ଯାଉଥିଲେ ଝଗଡ଼କୋଠର
ପୂର୍ବେ ପ୍ରଜା ସଙ୍କଟ ।
ଚଳାଉ ଥିଲେ ସେ ଶାସନ
ତାଙ୍କ ନାମାନୁଯାୟୀ ,
ଜଗନ୍ନାଥ ପୁର ବୋଲାଏ
ଶ୍ରେଷ୍ଠ ବ୍ରାହ୍ମଣ ସାହି ।
ଗୋପିନାଥ ରୂପେ ସେଠାରେ
ଜଗନ୍ନାଥ ଆପଣେ ,
ଅଧିଷ୍ଠାନ କରି ଅଛନ୍ତି
ସୂର୍ଯ୍ୟ-ଶୁକ୍ଳ ସଦନେ ।
ଦାମୋଦରପଲ୍ଲୀ ଉତ୍ତରେ
ଦାମୋଦର ବାଞ୍ଛିତ ,
ନାଗବଲ୍ଲୀ ଯହିଁ ଅଗସ୍ତି—
ଦ୍ରୁମେ ଗାଢେ଼ ଜଡ଼ିତ ।
ପ୍ରାକୃତିକ ଦୃଶ୍ୟ ତାହାର
ଦୂରୁଁ ଓଟାରେ ନେତ୍ର ,
ନନ୍ଦନ କାନନ ସଦୃଶ
ଶୋଭେ ଆଦର୍ଶ କ୍ଷେତ୍ର ।
କୃଷିର ଉନ୍ନତ ପ୍ରଣାଳୀ
ଶିକ୍ଷା ଦେବା ମାନସେ ,

ସ୍ଥାପିଲେ ନୃପତି ଅଦର୍ଶ
କୃଷିକ୍ଷେତ୍ର ଧରଷେ ,
ଅଟଇ ସିନା ମଞ୍ଜ ଉନ୍ନତି—
ମୂଳ କୃଷି ଉନ୍ନତି ,
ବୁଝିଣ ଏହା ଯେ ସେ ନରେଶ
ଅଦଭୁତ ନୃପତି ।
ଦାମୋଦରପଲ୍ଲୀ ଅଦୂରେ
ଋଷିକୁଲ୍ୟା ଭଗିନୀ ,
ଧୋଇ ମୁକ୍ତେଶ୍ୱର ( ୧ ) ଚରଣ
ଗମେ କଲନାଦିନୀ !
ଗଞ୍ଜାମ ଭୂମିର ଝମଣୀ
ପ୍ରାପ୍ତ ଗମେ ପ୍ରଗରେ ,
ଛିଖି-ମୁଙ୍କ-ମୁକ୍ତ ସର୍ଧ ଦ୍ୱ
ବକ୍ରେ ପଳାଏ ଖରେ ;
ଚନ୍ଦ୍ରକଲେଶ୍ୱର ( ୨ ) ସକାଶୁ
ମୁକ୍ତେଶ୍ୱର ସଦନ—

( ୧ ) ଋଷିକୁଲ୍ୟା କୂଳସ୍ଥ ଶିବଲିଙ୍ଗ ।
( ୨ ) ସ୍ୱନାମ ପ୍ରସିଦ୍ଧ ଶିବଲିଙ୍ଗ ।

ଯାଏଁ, କେନ ଘରେ ଅନାର
ନବ ଧାତ୍ର ଶାସନ ( ୧ ) ।
ନବସନ୍ତ ତହିଁ ଅସଂଖ୍ୟ
ସଦାଶ୍ରୀ ବ୍ରାହ୍ମଣ,
ସଦା ସତ୍ ପ୍ରସଙ୍ଗ କରନ୍ତ
ବହୁ କୁଳାଗ୍ରଗଣ୍ୟ ।
ପୂର୍ବ ଦିଗେ ମୃଣ୍ମୟଗଡ଼ ( ୨ )
ସଦା ଶସ୍ୟ-ଶ୍ୟାମଳ,
ପ୍ରକୃତି-କମଳା ଦେବୀଙ୍କ
ପ୍ରିୟ ବିହାର ସ୍ଥଳ ।
ଋଷିକୁଲ୍ୟା ନଦୀ ପ୍ରସାଦେ
ତାର ସୌଭାଗ୍ୟୋଦୟ–
ହୋଇଛି, ସେ ଭୂମି ମୃତ୍ତିକା–
ନୁହେ, କାଞ୍ଚନମୟ ।
ଧନ୍ୟ ଢେଙ୍କାନାଳ ଧରଣୀ
ମହାକବି ଜନନୀ,

( ୧ ) ଗଙ୍ଗାପୁର ଗଜେନ୍ଦ୍ରପୁର, ନାରାୟଣପୁର, ଶ୍ୟାମଘନ-ପୁର, ତିଲୋତ୍ତମାଦେଈପୁର, ରାମଚନ୍ଦ୍ରପୁର, ଗୋବର୍ଦ୍ଧନ-ପୁର, ପଞ୍ଚସିଂହପୁର ଓ ଦାମୋଦରପୁର ।
( ୨ ) ଗୋଟିଏ ଗ୍ରାମର ନାମ ।

ଲକ୍ଷ୍ମୀ ସରସ୍ୱତୀ ମିଳନ—
ଭୂମି , ଶୋଭା ଦର୍ପଣୀ ।
ସ୍ୱଭାବ-ଶୁଦ୍ଧା ଭଂଜନଗର
ପୁଣ୍ୟ-ସୌଭାଗ୍ୟ ବତୀ ,
ଧନ୍ୟା ହେଲ ଅଙ୍କେ ଧରଣି
କୃଷ୍ଣସିଂହ ନୃପତି ।
ଭେଟି ସେ ସ୍ୱଜନ୍ୟବାଞ୍ଛିତ
ସୁତ ସିଂହ ଆସନ ,
ବାଗ୍‌ଦେବୀ ମଣ୍ଡପେ ସତତ
କରୁ ଉପବେଶନ ।
ବୀଣାପାଣି ପାଦ ପୂଜାରେ
ଥାଇ ନିତ୍ୟ ନିରତ ,
ରଚିଲେ ପୁରାଣ ଅଠର —
ପର୍ବ ମହାଭାରତ ।
ଉତ୍କଳରେ ପୂଜାପାଉଛି
ପ୍ରତି ଘରେ ସେ ଗ୍ରନ୍ଥ ,
ଗୁରୁରୂପେ ପୁଣି ଦେଉଛି
ଧର୍ମ୍ମ ଶିକ୍ଷାର ପନ୍ଥ ।
ବୈଷ୍ଣବ ପ୍ରବର ଶ୍ରୀକୃଷ୍ଣ—
ସିଂହ ଭକତ କବି ,

ଗାଇଲେ ମଧୁରେ ଗୀତା ସେ
ଭକ୍ତି-ରସରେ ଦ୍ରବ ।
କରଣକୁଳର ଚନ୍ଦ୍ରମା
କୃଷ୍ଣ ପଟ୍ଟନାୟକ ( ୧ ),
ଜଂଛଲ ଭାଗବତ ପୁଣି
ପଞ୍ଚମସ୍କନ୍ଧ ରଚକ ।
ବସ୍ତୁତ ସୁକବି ଜନନୀ
ରସ କାବ୍ୟ ଭଣ୍ଡାର,
କି ବର୍ଣ୍ଣିବ ଅବ୍‌କୋଷ ତୋ
ଗୁଣ ଶୋଭା ସମ୍ଭାର ।
ଦେଖି ତୋର ଉପକଣ୍ଠର
ଚାରୁ ପ୍ରକୃତି ଛବି,
ମଣେ ମୁ ଏମନ୍ତ-ହୋଇବେ
ତହିଁ ଅନେକ କବି ।
ଦେଖିବି ଏବେ ମୁ ଯାଉଣ
ଥରେ ଗଞ୍ଜନଗର,

( ୧ ) ଏ ଜଣେ ପ୍ରାଚୀନ କବି ଏବଂ କୃଷ୍ଣସିଂହ ମହାରାଜ-ଙ୍କର ଲେଙ୍କ ଥିଲେ ।

ସ୍ୱର୍ଣ୍ଣୋଜ୍ଜ୍ୱଳ ସ୍ତବେ ମଣ୍ଡିତ
ହୋଇଅଛୁ ସେ ସୃଷ୍ଟି ,
ଦେବାଳୟେ ସଦା ବାଜୁଛି
କେତେ ତୂରୀ ମଦ୍ଦଳି !
ପତ ପତ ହୋଇ ପତାକା
ଉଡ଼େ ସଉଧ ଚୂଳେ ,
ଅଙ୍ଗୁଳି ସଙ୍କେତ ଛଳେ କି
ଡାକେ ଦର୍ଶକ କୁଳେ ।
ଦେଖାଇବ ଶୋଭା ବଡ଼ିମା
ଶିଳ୍ପ କଳା ନିକର ,
ପୁଣି ହସ୍ତୀ ଘୋଡ଼ା ଶାର୍ଦ୍ଦୂଳ
ମୃଗ ପକ୍ଷି ନିକର ।
ପାର୍ଶ୍ୱ ଦେବ ବଧୂ ମୂର୍ତ୍ତି ଦର୍ପଣୀ
ଯହିଁ ସଜଡ଼ି ଥୋକେ ,
ବ୍ୟବହାର ଶିଳ୍ପ କଳାରେ
ଦକ୍ଷ ନଗର ଲୋକେ ।
କାହିଁ ବିଦ୍ୟାଳୟ ତଡ଼ାଗ
କାହିଁ ପାନ୍ଥ ଅଗାର ,
କାହିଁ ଦେବାଳୟ ବଗିଚେ
ନାନା ଶିଳ୍ପ ଭଣ୍ଡାର ।

ହୋଇଥିଲେ ସେ ସୂକ୍ଷ୍ମ ସୁଚାରୁ
　　　　ଶିଳ୍ପ କଳା କୌଶଳ ,
ଅଚଳଙ୍କ ହୋଇଁ ରହିବ
　　　　ନର ନେତ୍ର ପଟଳ ।
ନାରିକେଳ ବୃକ୍ଷ ଶୋଭଇ
　　　　ହୋଇ ଅନତ ଫଳେ ,
ତୃଷାର୍ତ୍ତ ପଥିକେ ଡାକେବ
　　　　ଶାଖା ସଙ୍କେତ ଛଳେ ।
ଫଳ ତାର ପୟଃପେଟିକା
　　　　ଯଥା ସାଧୁ ହୃଦୟ ,
ବାହାର କଠିନ ଭିତର
　　　　ତାର ସୁରସ ମୟ ।
ଛାମ ଗୁଚ୍ଛକ କି ସୁନ୍ଦର
　　　　ମନୋହର ପ୍ରଶସ୍ତ ,
ଦୁଇପାଶେ ଲୋକ ଆଳୟ
　　　　ମଧ୍ୟେ ପ୍ରଶସ୍ତ ପଥ ।
ଦୁଇଆଡ଼େ ଦୁଇ ତଟକ
　　　　ଅହା ସେ ଜନପଦ ,
ମଧ୍ୟେ ବିସ୍ତୃତ ବାଲୁକା—
　　　　ପୂର୍ଣ୍ଣ ନିର୍ମଳ ନଦ ।

ପ୍ରତି ଶୃଙ୍ଗାରକେ ଅଲେକ୍ଷ— ।
ସ୍ତମ୍ଭ ହୋଇ ପ୍ରୋଥିତ,
ସୁଶୋଭିତ ସୁନ୍ଦର ଗ୍ରନ୍ଥାଗାର
କରେ ଶୋଭା ବର୍ଦ୍ଧିତ ।
ଧାର ଶ୍ରୀ ମଦନ ମୋହନ
ସିଂହ ଦେବ ରାଜନ,
ଧର୍ମନୀତି ଧରି କରନ୍ତି
ଦେଶ ରାଜ୍ୟ ପାଳନ ।
ଅଙ୍ଗ ଆଭରଣ ତାଙ୍କର
ଦୟା, କ୍ଷମା, ବିନୟ,
ଅପବ୍ୟୟ ନ କରନ୍ତି ସେ
ଦର୍ଶେ ମାତ୍ର ସମୟ ।
ଛତିଶ ମହତି ସଭାର
ହୋଇ ସେ ସଭାପତି,
ଗଞ୍ଜାମର ଲୁପ୍ତ ଗୌରବ
ଉଦ୍ଧାରଲେ ନୃପତି ।
ନାହିଁ ରାଜକୋଷ ପ୍ରବୃଦ୍ଧି
ଦୁଷ୍ଟ ଜନ ଦଳନ,
ଅପକ୍ଷପାତିତା ସ୍ୱଧର୍ମ—
ଇଚ୍ଛା ଶିଷ୍ଟ ପାଳନ ।

ଏହି ପଞ୍ଚ ମହାଯଜ୍ଞର
ଅନ୍ତ ସେ ଯାଜ୍ଞିକ ,
ପୁଣି ସେ ଅନ୍ତ ସାହିତ୍ୟ
କାବ୍ୟ-ରସେ ରସିକ ।
ଛାଡ଼ିସ୍ତୁ ସୁଲଭ ସୀତାକୁ
ବର୍ଣ୍ଣି ଚାରଣ କେହି ,
ସ୍ୱର୍ଗୀୟପୁ ସ୍ୱର୍ଗୀ ପୃଷ୍ଠୁ
ଗାଏ ପଡ଼ାନ୍ତ ଡେଇଁ ।
ଭୀଷଣ ଶାର୍ଦ୍ଦୂଳ ମର୍ଦ୍ଦନ
ସେହି ନୃପ ଶାର୍ଦ୍ଦୂଳ ,
ଅବ୍ୟର୍ଥ ସନ୍ଧାନେ କେ ସହ
ଆନ ମୃତ୍ୟୁ ତୁଲ ।
ନାନା ସ୍ଥଳେ ଯାଏ ଅଛନ୍ତି
ନିଜ ରାଜ୍ୟ ଉନ୍ନତ ,
ସଦାଶୟତାରେ ଅଟନ୍ତି
ଆଦର୍ଶ ନୃପତି ।
ସମ୍ମୁଙ୍କ ସୁଗୁଣ ଅଧିକ
କି ବର୍ଣ୍ଣିବ ହେ ଗୁଣୀ ,
କେ ନଜାଣେ ତାହା ଉତ୍କଳ—
ବକ୍ଷେ ଧାଜୁ କୁ ବାଜା ।

ଯେବେ ମୋ ପ୍ରଣତି ଗ୍ରହଣ
ଦୂରୁଁ ଆସିଛୁ ଯାଇଁ ,
ଦେଶ ଦୁଃଖ କଷ୍ଟ ସମ୍ମୁଖରେ
ଜଣା କରିବା ପାଇଁ ।
ବୋଲିବ ଅନେକ ତ କରୁଛୁ
ଦେଶ କାର୍ଯ୍ୟ ସର୍ବଥା ,
କେତ୍ରି ମୁ ନ ପଡ଼ି କହୁଛୁ
କଥା ରଖିଣ କଥା ।
ଭିକାରୀର ଏତ ସ୍ୱଭାବ
ଯାହା ଦୁଆରୁ ପାଏ ,
ତାହା ଦୁଆରକୁ କେବଳ
ବାରମ୍ବାର ସେ ଯାଏଁ ।
କି ଥିଲା ଉତ୍କଳ କି ହେଲା
ତାର ଦୁର୍ଦ୍ଦଶା ଆସି ,
ଢାଙ୍କିଲା ସୁଖ-ସୂର୍ଯ୍ୟକୁ
ଦୁଃଖ-ଗ୍ରହ ଗରାସି ।
ଅନ୍ନପୂର୍ଣ୍ଣାଙ୍କର ଯେ ଭୂମି
ଥିଲା ଅନ୍ନ ଆକର ,
ଅନ୍ନ ପାଇଁ ଏବେ ତାହାରେ
ଅଣ୍ଟାଳନ୍ତି ଉଦର ।

ଅଂଚଳ-ନାଟକ ତାହାର
                    କ୍ରମେ ଯାଉଛୁ ଭୁଲି ,
ଦୁର୍ଭିକ୍ଷ-ପିଶାଚ ଖାଉଛି
                    ହାଡ଼୍ ମାଉଁସ ଛାଉ ।
ଆଲସ୍ୟ ଭଣରୁ ଯାଉଛି
                    ଜନ୍ ଅସାର ହୋଇ ,
ଜଡ଼ତା ରୂପିଣୀ ନିଦ୍ରାରେ
                    ଅଛୁ ଅଭାଗୀ ଶୋଇ ।
ଅପଦସ୍ଥ ଲୋକ ସମାଜେ
                    ପଦଧର୍ଷିତା ଲଞ୍ଛିତା ,
ରୋଗ-ଶୋକ-ମହାତମିସ୍ରାର—
                    ଚାପେ ଘୋର ଚାପିତା !
ଉନ୍ନତ ବୋଲନ୍ତି ଯେତ୍ତଏ —
                    ଅର୍ଥ,ସଙ୍ଘ ବଳରେ ,
ପଡ଼ିଛୁ ପଛରେ ଅଭାଗୀ
                    ପାଇଲୁ ଦୁଃଖ ଅସହ୍ୟେ ।
ଦ ଶିକ୍ଷା ସଭ୍ୟତା ପ୍ରାଧାନ୍ୟ
                    ବ ଗୌରବ ଏକତା ,
ସକଲ ବଷୟେ ହୋଇଛୁ
                    ଜାର ଭଲକୁ ମଥା ।

ଜନନୀର ତୁମ୍ଭେ ସୁପୁତ୍ର
　　　　ଗୌରବ ତୁମ୍ଭ ବଦନେ ,
ଶୁଣି ଅଛୁ ମାତା ଅଙ୍କରେ
　　　　ଆଶାଯୁକ୍ତ ନୟନେ ।
ତୁମ୍ଭେ ସଦା ସେବା ଶୁଶ୍ରୂଷା
　　　　କରୁଅଛ ତାହାର
ଯୋଗ୍ୟପୁତ୍ର କରେ ଶୁଶ୍ରୂଷା
　　　　ପିତା ତଥା ମାତାର ।
କ୍ଷେତ୍ର ବସ୍ତ୍ର ନେଇ ଔଷଧ
　　　　ସ୍ୱୟଂ କର ପ୍ରୟୋଗ
ଘୁଞ୍ଚାଅ ମାତୃ ଭୂମିର
　　　　ଯେତେ ସକଳ ରୋଗ ।
ତୁମ୍ଭ ଯୋଗେ ସେହୁ ଗଞ୍ଜାମ
　　　　ଥିବ ଉତ୍କଳେ ହସ୍ତ ,
ଦଶ ଲକ୍ଷ ସଙ୍ଗେ ଗୌରବେ
　　　　ଗଣ୍ୟ ହୋଇଣ ବସ୍ତୁ ।
ଏହି ଭିକ୍ଷା ସଦେ ମାଗୁଛୁଁ
　　　　ଜାନୁ ପତାଇ କର
କୃପାକଟାକ୍ଷେ ଆଶା ପୂରାଇ
　　　　ହେବା କେତେ ମାତର ।

ତୁମେ ଭାରତର ଶିକ୍ଷକ
ଦେଖୁଁ ପାଉଛୁ ଲୋପ ,
ନାହିଁକ କେଜାଣି ବ୍ୟାଖ୍ୟା
କଲେ ଦାରୁଣ କୋପ ।
ସୀତା ସାବିତ୍ରୀଙ୍କ ସଙ୍ଗରେ
ଆଧୁନିକ ଲଲନା ,
ତୁଳନାରେ ସିନା ହୋଇବେ
ତାଲ ବୃକ୍ଷା ଅଲଣା ।
ଯେତେ ଦିନ ଥିବେ ନାରୀଏ
ମୋହ ନିଦ୍ରାରେ ଶୋଇ ,
ତେତେ ଦିନଯାଏଁ ପୁରୁଷେ
ଥିବେ ଏକାଙ୍ଗ ହୋଇ ।
ନାରୀ ଜାତି ଶିକ୍ଷା ଉନ୍ନତି
ବିନା ହେ ଭଗବତି ,
ଆକାଶ-କୁସୁମ ସମାନ
ହେବ ଜାତି ଉନ୍ନତି ।
ଅତି ପ୍ରୟୋଜନ ଅଟଇ
ଏଣୁ ବାଳିକା ଶିକ୍ଷା ,
ହେଉ ସୁବ୍ୟବସ୍ଥା ସେଥିର
ମାତଃ ଏତିକି ଭିକ୍ଷା ।

ସ୍ୱାମୀଙ୍କ ମହିମା ପ୍ରସଙ୍ଗେ
  ଯେତେ ଜାଣିଥା ମୂଳ ,
ବେଶ ଉନ୍ନତର ସେ ଦିନା
  ଅଟେ ସୋପାନ ମୂଳ ।
ପ୍ରଭୁଦେବଙ୍କର ଶ୍ରୀମୁଖେଁ
  ଶୁଣି ଭକ୍ତି ବଢ଼ଇ ,
ବସ୍ତୁରଇ ମଣି-ଖଣିରୁ
  ଯିନା ଉପୁଜେ ମଣି ।
ଧର୍ମକୋଷ-ଧର୍ମ ମହିମା
  ଯେଣ୍ ଶସ୍ତ୍ରାମେ ଶୁଭ ,
ତେଣୁ ଥିବେ କେତେ ଏଠାରେ
  ଭକ୍ତ ଲୋକ ଅନେକ ।
ଦେଖିବ ଯାଉଛୁ ଏବେ ମୁ
  ଜାହା କାର୍ଯ୍ୟ ମହତ ,
ଉନ୍ନତେ ହେବ ଏ ପନ୍ଥେ
  ଭାଷା ପରବନ୍ଧକ ।



ଦୟାନନ୍ଦଦାସଙ୍କୁ ମୁଁ ଭଲରୂପେ ଚିହ୍ନେ ,
ବହୁକାଳ ପରେ ଦେଖାହେଲା ଏଠେ ଦିନେ ।
ଆସି ଘେନି ନମସ୍କାର , ପଚାରେ କୁଶଳ ,
ଭଲରେ ତ ପିଲାପିଲି ଅଛନ୍ତି ସକଳ ।
ଅନେକ ଇଂରାଜୀ ପଢ଼ା ମୁହଁ ମୁ ଦେଖିଛି ,
ମାତ୍ର ତୁମ୍ଭ ତୁଳନାରେ ନୁହନ୍ତି ସେ କିଛି ।
ଖୋଲି ବସିଅଛ ତୁମ୍ଭେ ଶିକ୍ଷାର ଦୋକାନ ,
କହୟା ମଣିଷ ଘେନି ଦୁଇ ଚାରି ଜଣ ।
ଗଞ୍ଜାମ ଓଡ଼ିଆ ପାଠ୍ୟ ଅଭାବ ମୋଚନେ ,
ସମର୍ଥ ହୋଇବ ତୁମ୍ଭେ ଦୃଢ଼ରେ ମୁଁ ମନେ ।
ଅତଏବ ସେହି କାର୍ଯ୍ୟ ଶୀଘ୍ର କର ଭାଇ ,
କହୁଛି ତୋ ହାତଯୋଡ଼ି ମୋ ଗୁଣ ପକାଇ ।
ଭୁବନେଶ୍ୱର ବାବୁତ ନବୀନ ଯୁବକ ,
ପଢ଼ାନ୍ତି ସେ ଭଲ ଜଣେ ଉତ୍ତମ ଶିକ୍ଷକ ।
ଟ୍ରେନିଂ ପାଠ ଶେଷ କରି ଫେରିଆସି ନାନା ,
ଲେଖ ଗ୍ରନ୍ଥେ ପାଠ ଯୋଗ୍ୟ ଏହି ମୋ ପ୍ରାର୍ଥନା ।
ନବୀନ ଭେଣ୍ଡ୍ରୀ ଶିକ୍ଷକ ହେ ଶଙ୍କର ନନ୍ଦା ,
ଚତୁର୍ବର୍ଗ ଫଳପ୍ରଦ ଅଟେ ଅଧ୍ୟାପନା ।
ଜନ୍ମପତ୍ରୀ,ଯନ୍ତ୍ର,ତୀର ରହସ୍ୟ କୁଶଳ ,
ଉଣାମଧ୍ୟ ନୁହଇତ ଶରୀରର ବଳ ।

ଲାଗ ଲାଗ କାର୍ଯ୍ୟ ଛାଡ଼ ଭଣ୍ଡଦେଉ ଅଧ୍ୟା ,
ଗାଙ୍ଗାମୀ ଭାଷାରୁ ନାନା ବାନ୍ଧୁ କଣ୍ଠ କଣ୍ଠା ।
ସାବଧାନ ମୋ କଥାକୁ ଦେଖ ଯଦି ଧାଳ ,
କେବଳ ଦକ୍ଷିଣା ନନା ପାଉଛୁ ଭୁ ଗାଳ ।
ସିଆଣା ମାଷ୍ଟର ଜଣେ ପଦ୍ମନାଭ ପଣ୍ଡା ,
ଦୁଷ୍ଟ ପ୍ରତି ଦୁଷ୍ଟ ହେତୁ ଥଣ୍ଡାପ୍ରଚେଷ୍ଟା ।
ଜାଣ ପଣ୍ଡେ ଖୁବ କଳିଯୁଗରେ ବେଭାର ,
ଲୁହାଚିହ୍ନ ପାଣିସିନା ଦୁଅଇ କମାର ।
ମୁରୁଣା ମନୁଷ୍ୟ ଜଣେ ମାର୍କଣ୍ଡ ଗୋସାଇଁ ।
ବୁଢ଼ା ହୋଇଗଲେ ପାଠ ପଢ଼ାଇ ପଢ଼ାଇ ,
ଅନେକ ଲୋକଙ୍କୁ ଦେଲେ ଜ୍ଞାନ ଚକ୍ଷୁଦାନ ।
ଏହେତୁରୁ ମୁଁ କରେଁ ତାଙ୍କୁ ଦେବଗୁରୁ ଜ୍ଞାନ ,
ତଦ୍‌ଦ୍ୱାରକୁ ଉପାଧିକ ହେ ସୂର୍ଯ୍ୟ ପ୍ରକାଶ ,
ରଖିଅଛୁ ନିଜ ନାମ ଜ୍ଞାଧୀଁ ଅପ୍ରକାଶ ।
ଭଲ ଅଳ୍ପ ପୋଥି ଖଣ୍ଡେ ଓଡ଼ିଆ ଭାଷାରେ ,
ଅନୁବାଦ କରିବାକୁ ଚେଷ୍ଟାକର ବାରେ ।
ଓଡ଼ିଆ ସୁଭାଷା ପକ୍କେ ନହେଲାତ ନାହିଁ ,
କର୍ମ କଲେ ତମ୍ଭୁ ଧର୍ମ ଗରୁଡ଼ାଯିତ କାହିଁ ।
ଇଚ୍ଛେ ପୋଷ କୁଣ୍ଡ ସିନା ସ୍ୱ ଜିସରକାର ,
କରୁ ପରକାଳ କଥା ଭାବିବା ଦର୍କାର ।

ଅତ୍ର ଯେତେ ଶିକ୍ଷକଙ୍କୁ କହୁଛୁ ସ୍କୁଲରେ ,
ଗୁରୁତର କାର୍ଯ୍ୟ ନ୍ୟସ୍ତ ଅଛି ତୁମ୍ଭ କରେ ।
ଯେଣୁ ଲାଏ ମାଟି ଯେନ ଗଢ଼ିବ ମନୁଷ୍ୟ ,
ଏଥୁ ବଳ ଦାୟିତ୍ୱର କାର୍ଯ୍ୟ ଅଛି କସ ।
ସ୍ତ୍ରୀନ୍ତୁ କର୍ତ୍ତବ୍ୟ ଗୁରୁତା ନିତ୍ୟ ନିତ୍ୟ ସ୍ମର ,
ହୃଷ୍ଟ ଚିତ୍ତେ ଦେଶକାମ ଯାଅ ସଙ୍କେ କରି ।
ହନ୍ତ୍ରରୁ ଖୁବ ଜଣେ ଚତୁର ସିଆଣା ,
କିନ୍ତୁ ବାହାରକୁ ଗୁଣ ପଡ଼େ ନାହିଁ ଜଣା ।
ଶିକ୍ଷାବ୍ୟବସ୍ଥାରୀ ମଧ୍ୟେ ନାରାୟଣ ତ୍ୟାଗି ,
ସମାନ ପ୍ରାଚୀନ ଲୋକ କେହି ନାହିଁ ଆଉ ।
ସେ ତ ମାନ୍ୟଲୋକ ଯେଣୁ ବୟସରେ ବଡ଼ ,
ତେଣୁ ତାଙ୍କୁ କି କହିବା ତାଙ୍କ କଥା ଛାଡ଼ ।
ଦୀନବନ୍ଧୁ ବାବୁ ତୁମ୍ଭ ମୂର୍ତ୍ତି ମଧୁମୟ ,
ଦିଏ ତୁମ୍ଭ ସଙ୍ଗୀତ ସ୍ପଷ୍ଟ ପରିଚୟ ।
ସୁଶୀଳତା ଧର୍ମମୂର୍ତ୍ତି ତୁମ୍ଭଙ୍କୁ ମୁ ମଣେ ,
କାରଣେ ତୁମ୍ଭେ ଶିକ୍ଷାଭକ୍ତ କର୍ମ୍ମବୀରୀ ଜଣେ ।
ଯୋଗ୍ୟ ପାତ୍ର ତୁମ୍ଭେ , ତେଣୁ କହିବ କଥାଏ ,
ମାତା ମାତୃଭୂମି ସେବା ସ୍ୱର୍ଗୁ ବଳିଯାଏ ।
ସେ କାର୍ଯ୍ୟରେ ଶକ୍ତିମତ କରୁଥିବ ଦାନ ,
ରଖିବେ ଦୀର୍ଘାୟୁ କରି ପ୍ରଭୁ ଭଗବାନ ।

ନୀଳାଦ୍ରି ଶ୍ରୀଉତ ବୋଉଚନ୍ଦ୍ର ବେଉ୍ବଗଣୀ ,
ମୁହଁଡ଼ା ଶୁଖାଉଥାନ୍ତୁ କପାଳଂ ଲେ ଛାଣି ।
ବଡ଼ଭାଇ ମାର୍କଣ୍ଡେୟ ପାନ ସେକ୍ରେଟରୀ ,
କି କରବ ପଇସା ଗୁଡ଼ାଏ ଜମା କରି ।
ନିଜ ବରଭାଇ ଡାକ ଦିଅ ସ୍ୱଦେଶକୁ ,
କଲମର ସହ ତାହା ପାଇବ ଶେଷକୁ ।
ଭାଗୀରଥୀ ବେବର୍ତ୍ତଙ୍କୁ ହରଡ଼ାଗଣ୍ଡିରୁ ,
କହାଉଲେ ଖଟକଣ୍ଢ କେତେ ପାଜ ଗୁରୁ ।
ହେଉ ଭାଇ ଯୋବାକୁଞ୍ଜ—ମିଳଲା ସର୍ବଥା ,
ଉଣାଗଲା କୁମ୍ଭୀରର ଅବଶ୍ୟାସୀ କଥା ।
ଚନ୍ଦ୍ରମଣି ଶ୍ରୀକରଣେ ବଡ଼ ପଦ ପାଇ ,
କାହିଁ ତ ବାଣ୍ଟିଲେ ନାହିଁ ପୁଷ୍ଟାଏ ମିଠାଇ ।
ନିବିଅ ପତ୍ରକେ ମୋତେ , ଦିଅ ସ୍ୱଦେଶକୁ ,
କର ଦିଅ ନାହିଁ ଏତେ ଆଶାୟୀ ଶେଷକୁ ।
ଗଞ୍ଜାମ ନନ୍ଦର ତନ୍ମୁ ପିତାମହଙ୍କର ,
କୀର୍ତ୍ତି ସ୍ତୁର କହୁ ହେଲେ ତନ୍ମେ କାର୍ଯ୍ୟକର ।
ଥିଲେ ସେ ଗଣେଶ 'ପରି ଭାରତ ଲେଖକ ,
କୃଷ୍ଣ ସିଂହ ବେଦବ୍ୟାସ ସମାନ ରଚକ ।
ସାଧୁ, ବୈଦ୍ୟନାଥ ତୁହେଁ ନବୀନ ଯୁବକ ,
ଦେଖାଅ କରଣକୁଳ ମର୍ଯ୍ୟାଦାର ଟେକ ।

ଲାଗିଥାଅ କର୍ତ୍ତବ୍ୟରେ ନକର ଆଳସ୍ୟ ,
ଗୁଣ ଥିଲେ ପୁରସ୍କାର ମିଳିବ ଅବଶ୍ୟ ।
ସଦା ସହାସ୍ୟବଦନ କ୍ଷେତ୍ରବାସୀ ସାଠୀ ,
ବୁଲୁଥାଅ ଯେନ ସଦା ସର୍ବେ ମାପକାଠି ।
ବହିଛି ମୁଁ ଦେଶ ଦେଶେ ଥାଏ ଭ୍ରମଣ ,
ମନ ଅନୁରୂପ କନ୍ତୁ ହାତେ ନାହିଁ ଧନ ।
ମନସ୍ୱୀ କୀର୍ତ୍ତନ ନେଲେ କଳିର ବେଭରେ ,
ସକଳ ଆପଦ ପଡ଼ିଣି ତାହାଙ୍କ ମଥାରେ ।
ଦେଖିଣି ତୁମ୍ଭଙ୍କ କାଚଦ୍ୱାର ତାମ୍ବରୀ ,
ବରକ୍ତ ହେଲେଯେ କେତେ ଉଚ୍ଚ ଅଧିକାରୀ ।
ସବୁବେଳେ ଲଗାଇଲେ ଯହୁଁ ଖିଷ୍ଟମିଟି ,
ଛାଡ଼ିଦେଲ ତହୁଁ ନନା ଅସିବା ପାଇଁ ।
ଦେଖାଇଛ ତୁମ୍ଭେ ଦୃଢ଼ ନୈତିକ ସାହସ ,
ସେଥିପାଇଁ କହିବି ମୁଁ ସାବାସ ସାବାସ ।
ଅଯୋଧ୍ୟାଦାସ ବାବାଙ୍କ ହେ ବଡ଼ମହନ୍ତ ,
ମଠ ହାଲ ଖୋଲ ତୁମ୍ଭେ କରୁଛ ତଦନ୍ତ ।
ସମସ୍ତ ମଠର ଘର ଅଛି ତୁମ୍ଭ କରେ ,
ଚଳାଉଛ ଠିକରୂପେ ଅତି ଜାଗ୍ରତରେ ।
ନହେଲେ ଦେବଧନର ଅପବ୍ୟବହାର ,
ସେହିତ ଉନ୍ନତି , ଆଉ ଉନ୍ନତି କା ପର ।

ଶଙ୍କରୀଙ୍କ ମଠରେ କଲୁ ଅବସ୍ଥିତ ,
ଶୁଣି ମୋର ମନେ ଦୁଃଖ ଜାତ ହେଲା ଅତି ।
ତାଲୁକାର ପ୍ରତି ପୂଜା ଗଡ଼ଜାତେ ଯାନ ,
ସେ ମଠକୁ କରୁଥିଲେ ଭୋଗଙ୍କ ପ୍ରଦାନ ।
ଏଥିରେ ସେ ମଠ ପୁଣି ଏବେ ଅବନତି ,
କାହିଁକି ଘଟିଲା ତାହା ଠାକୁରେ ଜାଣନ୍ତି ।
ଦୃଷ୍ଟ ଗୋପୀନାଥ ମିଶ୍ର ପୁରାଣ ପାଠକ ,
ସଦାଚାରୀ କୃଷ୍ଣଙ୍କୁ ଅତି ଭକ୍ତଲୋକ ।
ଦେବୋଦ୍ଧୃତ ଗୀତ କଣ୍ଠ ଗାଅ ମିଷ୍ଟସ୍ୱର ,
ଯୋଗ କୃଷ୍ଣସିଂହ ମହା-ଭାରତ ଟୀକାର ।
ବାଲଜି ଗଙ୍ଗାଧର ତ ମରହଟ୍ଟୀ ଜଣେ ,
କେବୁନ୍ଦୁହେଁ ତାଙ୍କ ସଙ୍ଗ କଷ୍ଟପକ୍ଷୀ ପଣେ ।
କୁଡ଼ାହେଲା ପାରଡ଼ିକ ଚନ୍ଦ୍ର ଏବେ ଜନା ,
ଘର ପୁଅ ଯୋଗ୍ୟ ଯାର ତାର କଳ୍ପନା ।
କହିବ ତୁମ୍ଭଙ୍କୁ କିସ ହେ ବୈଦ୍ୟଭୂଷଣ ,
ତାହାଙ୍କୁ ନାକଗୁହ କରତ୍ରପାରଣ ।
ଶୁଣିଅଛୁ ତୁମ୍ଭେ କିଛି ଜାଣିଅ ବଇଦ ,
ରୋଗ ଛାଡ଼ ଦିଅ ଦେଇ ମାନାଏ ଔଷଧ ।
ଚିରସ୍ଥାୟୀ କରିବାକୁ ନାମ ଯଦ୍ ଭାବ ,
ଲେଖିଥିବ କେତେ କଣ୍ଠ ଔଷଧର ଡାବ ।

ଶୁଣେ ଶୁଭ ବଡ଼ଲୋକ ପୁରୁଷୋତ୍ତମସ୍ୱାମୀ ,
ଯନରେ କି ମନରେଖା କହୁଛି ଜାଣେ ନାହିଁ ।
ଗୋସ୍ୱାମୀ ପଟ୍ଟନାୟକଙ୍କ ନାମ କିଏଁ ଦେଖ ,
ଚଳୁଅଛି ଠିକି ଖାଣ୍ଟି ଧୂର୍ତ୍ତର ଲେଖା ;
ଯେ ଖଣ୍ଡକ ଦୋଷ କର ଲେଖ ଅନ୍ତର୍ଗଣ୍ଡ ,
ଭୁକ୍ତାରେ କେବେ ହେଲେ ନ ଭଗ ହେ ଦଣ୍ଡେ ।
ବେବର୍ତ୍ତା ପଟ୍ଟନାୟକେ କହେ ଭୂମିକଥା ,
ଦେଖ ଛନ୍ଦରେ କପା ଯୋଡ଼ଅଛି ମଥା ।
ଭୂମିପର ଗ୍ରନ୍ଥଗୀତ ଅର୍ଥ ସୁକୁଶଳ ,
ଗୀତାର୍ଥୀ ପଣ୍ଡିତ ପ୍ରାପ୍ତ ଗନ୍ତାମେ ଯଜନ ।
କର କାନ୍ତି ନିଜ ଗୁଣ ସୁଦେଶେ ପ୍ରଚାର ,
ଯେତେ ଯାଜି ଥିଲେ ବିଦ୍ୟା କେଉଁ ଉପକାର ।
ବୁଝାହେଲ ଭୂମେ ବେଦ ଅତର ଏଥି ,
ପଠାଇଲେ ପ୍ରକାଶକର ପ୍ରେମସୁଧାନିଧି ।
ଅନନ୍ତ ଦାସେଙ୍କ ତାଙ୍କ ମାହାତ୍ମ୍ୟ ବେଖାଣ ,
ହାଳିଅରେ ପଢ଼ନ୍ତି କନ୍ଦନ୍ଦ ଶୋଭନ ।
ଅନ୍ତ ବିଷ୍ଣୁ ମାହାତ୍ମ୍ୟ ଲେଖ ଯେ ପଣ୍ଡିତ ,
ତେଣୁ ପୁଣି ଖୋଲିଲେ କେ କରବ ହାସ୍ୟ ।
ପୁଣ୍ଡୁ ଗ୍ରାମେ ଜନ୍ମ ଶ୍ୟାମସୁନ୍ଦର ଗୋସ୍ୱାମୀ ,
ନାନା ସମ୍ବାଦ ଲୋକଙ୍କ ଦେଖ ହିତକାମୀ ।

ପାଠାଗାର କଲ ଶ୍ୟାମ ସମ୍ବାଦ ପୁସ୍ତକ ,
ନ ଅଛନ୍ତି ତେଉନାହିଁ ପଢ଼ିବାକୁ ଲୋକ ।
ରୋପିଲ ତ ମରୁଭୂମି ମଧ୍ୟେ ପୁଷ୍ପତରୁ ,
ଭ୍ରମରେ ଆସିବେ ଭଲ ବୋଲି କେଉ ାରୁ ।
ଧନାଢ୍ୟ ପାଠାଗାର ପିତାମହ ନାମେ ,
ସ୍ଥାପିବାରୁ ସନ୍ତୁଷ୍ଟ ମୁ କଣ୍ଟେ ତୁମ୍ଭ କାମେ ।
    ଝଲଗି ଓଲଗି ନାନା ସାହିତ୍ୟଭୂଷଣ ,
ବୁଝିଲ ତ ନାହିଁ ତୁମ୍ଭେ ଧାଷାର କଷଣ ।
ଶୁଣେ ବେଳେ ବେଳେ ଲୋକ ସଂସ୍କୃତରେ ଏକା
ବାହାରିଛି ନବାହାରେ କପାଁ ଯେହ୍ନ ଲେଖା ।
ସୁପଣ୍ଡିତ ବୋଲି ଖ୍ୟାତି ଅଛି ଗଞ୍ଜାମରେ ,
ତେବେ କିପାଁ କହ ଅଛ ଏତେ ସଙ୍କୋଚରେ ।
ଛିନ୍ନଅଛି କର ଯୋଡ଼ି ହେ ମାନ୍ୟ ପଣ୍ଡିତେ ,
ଖପା ହୁଅ ପଛେ କିନ୍ତୁ କର ଦେଶହିତ ।
ସ୍ୱାର୍ଥଶୂନ୍ୟ ଅଧ୍ୟାପନା କରୁଅଛ ବ୍ରତ ,
ଏହେତୁ ମୁଁ ଧନ୍ୟବାଦ ଦେବ ଶତ ଶତ ।
    ଜ୍ୟୋତିର୍ବିଦ୍ୟା ନଣ୍ଡାରଦ ହେଉଛନ୍ତି ଜ୍ୟୋତିଷ ,
ଚେଲ ଗଲ ବୃଦ୍ଧ ବସି ଦେଖୁ ଅଛି ଦୋଷ ।
ସରଳ ଜ୍ୟୋତିଷ ଗ୍ରନ୍ଥ ଦେଶରେ ଅଗ୍ରତ ,
ତେତେ କର ହେ ଭଲ ତୁମ୍ଭେ ତିରୋଭାବ ।

ଦୁର୍ଭିକ୍ଷ ତ ରକ୍ଷଣ ନ ହୋଇଲା ଦେଖାଇ ,
ସେଥର କୌଣସି ଅଯୋଗ୍ୟ ଛିଦ୍ରପୂଜା କର ।
ଦଣ୍ଡବର୍ତ୍ତ ଲଙ୍ଗଣ୍ଟ ସାଙ୍ଗପ୍ରସ୍ତାବରେ ,
ନଭାବ ଗୋସାଇଁ କିଛୁ ଅନ୍ୟକଥା ଚାହେଁ ।
ଭୁଲକ୍ରମେ ଭୁମୃକଥା ଯାଇଥିଲ ଗ୍ରନ୍ଥ ,
କ୍ଷମାଙ୍କର କହୁଅଛୁ ବେନକର ଯୋଡ଼ି ।
ବିଦ୍ୟମାନ ଭୁମୃଠାରେ ବ୍ରାହ୍ମଣର ଶକ୍ତି ,
ଦେଖିଲା ମାନବେ ତେଣୁ ଜାତହୁଏ ଭକ୍ତି ।
ଲୋକନାଥ ମିଶ୍ର ଜଣେ ସଂସ୍କୃତ ଶିକ୍ଷିତ ,
ପଣ୍ଡଦେବ ଚୌପାଢ଼ୀର ଅଧ୍ୟକ୍ଷ ପଣ୍ଡିତ ।
ମରହଟ୍ଟୀ ଗୀତ ଛନ୍ଦ ମାର୍ଜିତ ରୀତିରେ ,
ଶିକ୍ଷାର ବ୍ୟବସ୍ଥା କର ପ୍ରଚଳନ ମିଶ୍ରେ ।
ନରୁବା ଙ୍କ ଫଳ ଲୁଚ୍ଚା ସମାପ୍ତି ଗାଇ ,
ନଜାଣିଲେ ଘଟେ ପୀଡ଼ା ଅର୍ଣ୍ଣିସାଙ୍କ ମାଈ ।
ଲଙ୍ଗଗଜଶର୍ମା ଏବେ ଲୁଚିଛନ୍ତି କାହିଁ ,
ଚେର ଦିନ ହେଲା ତାଙ୍କ ସଙ୍ଗେ ଦେଖା ନାହିଁ ।
ପୂର୍ବେ କେତେ ଲେଖୁଥିଲେ ବୃପନବ୍ୟବସ୍ଥା ,
ଏବେ କପି ଛାଡ଼ି ଦେଲେ ଲେଖା ପ୍ରତି ଆସ୍ଥା ।
ମାର ମୁଣ୍ଡା ଖୋଲ ବିର କେଡ଼େ ଆଡ଼ମ୍ବର ,
ଘୋଷିଦେଲେ ଏବେ ସବୁ ପାଠକୁ ଗଳର ।

ନୀଳକଣ୍ଠ ନନ୍ଦରାଜ ପ୍ରଣାମ ପ୍ରଣାମ ,
ନୈଷ୍ଠିକ ପଣ୍ଡିତ ବୋଲି ଖ୍ୟାତ ତୁମ୍ଭ ନାମ ।
ବୁଢ଼ା ହେଲ ଅସୁ ଅଚ୍ଛ ଘର ଭବସ୍ଥାନ ,
କାର୍ଯ୍ୟେ ସୁନିର୍ମଳ କର ପାରତ୍ରିକ ବାଟ ।
ଅଉ କଣ୍ଡ କାମ ପଢ଼ୁଛ ନକର ଅର୍ଥକା ,
କହିଯାଅ କେତେ ଶାସ୍ତ୍ର ଗ୍ରନ୍ଥପୋଥି ଟୀକା ।
ହେ ମାଗୁଣି ସ୍ୱପୁତ୍ରରୁ ଅଟନ୍ତି ଆପଣେ ,
ଧର୍ମ୍ମର ବ୍ୟବସ୍ଥା ଦାତା ସୁପଣ୍ଡିତ ଜଣେ ।
ଅଧିକ ତୁମ୍ଭଙ୍କୁ ଅଉ କହିବି ମୁ କିସ ,
ଜରଯିବ ତୁମ୍ଭ ପରେ କେତେ ଜଣ ଶିଷ୍ୟ ।
ରହିଯାଇଥିବେ ପରୁ ଅଉ କେତେ ଜଣ ,
ଜଣାଉଛୁ ସେମାନଙ୍କୁ ଯଥା ସମ୍ଭାଷଣ ।
ସେମାନଙ୍କ ପ୍ରସଙ୍ଗ ମୁ ନପାରିଲି କହି ,
ବିଷୟ ବାହୁଲ୍ୟ ହେଲେ ବଢ଼ିଯିବ ବହି ।
ଅନେକ ପ୍ରାଚୀନ ଦୃଶ୍ୟ ଅଛି ଏ ରାଜ୍ୟରେ ,
ଯାଉଛି ଦେଖିବି କୃଷ୍ଣକାନନ ମୁ ଥରେ ।
କୃଷ୍ଣସିଂହ ରାଜାଙ୍କର ସ୍ୱହସ୍ତ ରୋପିତ ,
ଏହେତୁ କୃଷ୍ଣକାନନ ନାମେ ଅଭିହିତ ।
ଆମ୍ର , ନାରିକେଳ , ତାଳ , ଖର୍ଜ୍ଜୁର , ବଉଳ ,
କଦମ୍ବ , କେଶରୀ ଆଦି ପାଦପ ବହୁଳ —

ଅଛି ସେ କାନନେ , ପୁଣି ମଧ୍ୟେ ସ୍ୱଚ୍ଛପୟ ,
ଅଛି ଏକ ମନୋହର କ୍ଷୁଦ୍ର ଜଳାଶୟ ।
କାନନ ସୁନ୍ଦରୀଙ୍କର ଦର୍ପଣ ସଦୃଶ୍ୟ ,
ସେ ସୁରମ୍ୟ ଜଳାଶୟ ଅତି ଶୋଭାପାଏ ।
ତତ୍ତୀରୁ ଜଳ ନେଇ ଢାଳି କୃଷ୍ଣସିଂହ ନୃପ ,
ବଢ଼ାଉଣ ଥିଲେ ଏହି କାନନ ପାଦପ ।
ଶିଶିରେ ପ୍ରକୃତି ବେଶ-ପରୀ ଦୀନହୀନ ,
କାଳବଶେ ସେ କାନନ ହୋଇଅଛି ଜୀର୍ଣ୍ଣ ।
ବର୍ତ୍ତମାନ ମହାରାଜା ସର୍ବଗୁଣାଧାର ,
ଆଶା ଅଛି କରିବେ ସେ କାନନ ସଂସ୍କାର ।
କୃଷ୍ଣସିଂହକୃତ ମହାଭାରତ ପୁସ୍ତକ ,
କରୁଅଛନ୍ତି ଛପା ଲଭି ସେ ପୁଲକ ।
କରୁଛି ଧାରଣା ଏହା ଦେଖି ନିଃସଂଶୟ ,
କୁଳ କୀର୍ତ୍ତି ରକ୍ଷା ଯତ୍ନ କରିବେ ନିଶ୍ଚୟ ।
ସତୀମଠ କରଗୁଞ୍ଜିତ ଋଷିକୁଲ୍ୟା ତଟେ ,
ଯାଉଛି ଦେଖିବ ଏବେ ତାହାର ନିକଟେ ।
ଏଠାରେ ସଜ୍ଜିତ ହେଲ କୃଷ୍ଣସିଂହ ଚିତା ,
ସହମୃତା ହେଲେ ତାଙ୍କ ପତିବ୍ରତା ବନିତା ।
ସେହି ଦିନଠାରୁ ଚିତା ହୋଇଛି ରକ୍ଷିତ ,
ଚିତାକୁଣ୍ଡ ପରେ ହୋଇ ମଣ୍ଡପ ନିର୍ମିତ ।

ସତୀ-ଜଙ୍ଘ-ଦାଘ୍ମ ସେହି ପବନ ଅନଳ ,
ପାଉଛନ୍ତି ପୂଜା ତହିଁ ଏତାବତ କାଳ ।
ହୋଇଅଛି ସେ ମଠର ସତୀମଠ ନାମ ,
ପୂତଆତ୍ମା ଅଧିଷ୍ଠିତ ସ୍ଥାନ ପୁଣ୍ୟଧାମ ।
  ଅନେକ ପ୍ରକାର କୃଷି ହୁଏ ଏହି ରାଜ୍ୟେ ,
ଶିଳ୍ପିଏ ନିପୁଣ କଂସା ଆଦି ଶିଳ୍ପ କାର୍ଯ୍ୟେ ।
ରାଜ୍ୟ ମଧ୍ୟେ ଜଳାଧାର ଅଛି ଠାଏଁ ଠାଏଁ ,
ଆବଶ୍ୟକ ବେଳେ ଜଳ ନିଅନ୍ତି ପ୍ରଜାଏ ।
ଅନ୍ତର୍ବାଣିଜ୍ୟର ଗତି ରାଜ୍ୟରେ ପ୍ରବଳ ,
ଅବଶ୍ୟ ଏ ସୂତ୍ରଥାଇ ଅଶେଷ ମଙ୍ଗଳ ।
ବର୍ତ୍ତମାନ ନରପତି ଚେଷ୍ଟାଶୀଳ ଅତି ,
ଶୀଘ୍ରହସ୍ତେ ସାଧୁଛନ୍ତି ରାଜ୍ୟର ଉନ୍ନତି ।
ପୂଜାବ୍ରତ ବ୍ରତ କରିଅଛନ୍ତି ଧାରଣ ,
କରନ୍ତୁ ଈଶ୍ବର ତାଙ୍କ ବାସନା ପୂରଣ ।



—॥୫॥ ସମାପ୍ତ । ॥୫॥—

—୦:୦:( ✱ ):୦୦—